ଓଁ

'ନମଃ ଶିବାୟ

# କେଦାର ବ୍ରତ କଥା

ଲେଖକ:—

ଶ୍ରୀ ଶ୍ୟାମସୁନ୍ଦର ଗନ୍ତାୟତ ଶର୍ମା



ପ୍ରାପ୍ତିସ୍ଥାନ—

ସନ୍ନ୍ୟାସୀ ପୁସ୍ତକାଳୟ

ଦେଶବେହରା ସାହି, ବ୍ରହ୍ମପୁର

ମୂଲ୍ୟ — ଦୁଇଅଣା

# କେଦାରବ୍ରତ କଥା



ଏକ ଦିନକରେ ନୈମିଷା ଋଷି କୁନ୍ତୀଙ୍କୁ ସଙ୍ଘୋଳି ଗଲେ ବନସ୍ତରେ ଯାଉଁ ଯାଉଁ କୁନ୍ତୀଙ୍କୁ ଭେଟିଲେ । କୁନ୍ତୀଙ୍କୁ କୁଶଳ ପୁଚ୍ଛିଲେ କୁନ୍ତୀ ବୋଇଲେ କି କୁଶଳ କହିବି । ଦୁର୍ଯୋଧନ ରାଜ୍ୟରେ ରାଜା ହେଲ । ଆମ୍ଭ ସନ୍ତତେ ପୁତ୍ରମାନେ ବନବାସ କଲେ, ଅତି ଦୁଃଖ ପାଇଲେ । ଏହା ଶୁଣି ନୈମିଷା ଋଷି କହିଲେ, ଏବେ ତୁମ୍ଭେମାନେ କେଦାରବ୍ରତ କର । ଏହା ଶୁଣି କୁନ୍ତୀ କହିଲେ, ସେ ବ୍ରତ କେଉଁ ଯୁଗ କେଉଁ କାଳେ କେହୁ କରିଥିଲେ, କି ରୂପେ ସେ ବ୍ରତ କରନ୍ତି ଏହା କହନ୍ତୁ । ଏହା ଶୁଣି ନୈମିଷା ଋଷି କହିଲେ ଏବେ ଶୁଣିବା ହୁଅନ୍ତୁ । ପୂର୍ବ କାଳରେ ସତ୍ୟଯୁଗରେ ଏ ବ୍ରତ ସ୍ୱର୍ଗର ଅପ୍ସରାମାନେ କରନ୍ତି । ଏବେ ତୁମ୍ଭେ ଏ ବ୍ରତ କର । କାର୍ତ୍ତିକ-ପୂର୍ଣ୍ଣମୀ ଦିନ ଏ ବ୍ରତ କରିବ, ସର୍ବଜ୍ଞ ରୁଦ୍ରମଣ୍ଡଳ କାଟିବ । ତତ୍ପରେ ଈଶ୍ୱର ପାର୍ବତୀ ସ୍ଥାପିବ । ନନ୍ଦୀ ଭୃକୁଟି ଦ୍ୱାରେ ସ୍ଥାପିବ ଏକୋଇଶି ଖିଅରେ ବ୍ରତ କରିବ । ବ୍ରତରେ ଏକୋଇଶି ଗଣ୍ଠି କରିବ । ଏକୋଇଶ ନାଡ଼ ଦୁବ କରିବ । ଏକୋଇଶି ଗୁଆ କରିବ, ଅପାମାରଙ୍ଗ ଦାନ୍ତକାଠି ଏକୋଇଶି ଖଣ୍ଡ କରିବ । ଏକୋଇଶି ଫଣା ହଳଦି କରିବ । ଏକୋଇଶି ବର୍ଣ୍ଣର ଫୁଲ କରିବ । ବହେଫଳ ଏକୋଇଶି କରିବ । କରଞ୍ଜଫଳ ଏକୋଇଶି ଖଣ୍ଡ କରିବ ।

ଏକୋଇଶି ପାନପତ୍ର କରିବ । ଏକୋଇଶି ବର୍ଣ୍ଣର ପିଠା କରିବ । ଅଁଲ ତୋଳ ଏକୋଇଶି କରିବ । ବରପିଠା ଏକୋଇଶି କରିବ । କଦଳୀ ନଡ଼ିଆ ଅକ୍ଷୁ ବାଡ଼ିବ, ଧୂପଦୀପ ଜାଳିବ, ଈଶ୍ୱରପାର୍ବତୀଙ୍କୁ ସ୍ମରଣ କରିବ । ଶ୍ରୀ କେଦାରନାଥଙ୍କୁ ସ୍ମରଣ କରିବ, ନଇବେଦ୍ୟ କରିବ । ଫୁଲ ଦୂବ ମଥାରେ ଘେନିବ । ଯାହା ମନାସିଲେ ତାହା କେଦାରନାଥ ପ୍ରସନ୍ନ ହୋଇ ଦିଅନ୍ତି । ମନ କାମନାସିଦ୍ଧି କରନ୍ତି । ଏହାଶୁଣି କୁନ୍ତୀ ପଚ୍ଛିଲେ—ଏବ୍ରତ କରି କେଉଁମାନେ କେଉଁ ଫଳ ପାଇଲେ ତାହା ମୋତେ କହନ୍ତୁ । ଏହାଶୁଣି ନୈମିଷାରଷି କହିଲେ ଶୁଣିବା ହୁଅନ୍ତୁ । ସତ୍ୟଯୁଗରେ ଏକ ବ୍ରାହ୍ମଣ ଚକ୍ରଧର ପଣ୍ଡା ବୋଲି ଥାଏ । ତାହାର ଭାର୍ଯ୍ୟା ନାମ ସୁଶୀଳ ଚକ୍ରଧରପଣ୍ଡାର ଦୁହିତା ଯୋଡ଼ିଏ । ଗୋଟିକ ନାମ ଭାଗ୍ୟବତୀ, ଅନ୍ୟଟି ନାମ ପୁଣ୍ୟବତୀ । ସେ ଅତି ଦରିଦ୍ର । ଗୋଟିଏ ଗାଁ ଗଲେ ମାଣେ ମିଳେ, ଦଶଗାଁ ଗଲେ ମାଣେ ମିଳେ । ଖାଇବାକୁ ପେଜନାହିଁ, ପିନ୍ଧିବାକୁ କନା ନାହିଁ । ଦୁହିତା ଯୋଡ଼ିକ ଛିଣ୍ଡାକନା ଗଣ୍ଠି ପକାଇ ପିନ୍ଧୁଥାନ୍ତି, ବନସ୍ତକୁ ଘଷି ଗୋଟାଇବାକୁ ଯାଉଥାନ୍ତି । ଅତି କଷ୍ଟରେ ଅତି ଦୁଃଖରେ ଦିନ କାଟୁଥାନ୍ତି । ଏକ ଦିନକରେ ଘଷି ଗୋଟାଇବାକୁ ବନସ୍ତକୁ ଯାଇଥିଲେ । ଘଷି ଗୋଟିଆଇ କୁଣ୍ଡିରେ ପୁରାଇଲେ । ସେହି ଦିନ କାର୍ତ୍ତିକ ପୂର୍ଣ୍ଣମୀ ତିଥି, ସୋମବାର ହୋଇଥିଲା । ସ୍ୱର୍ଗରୁ ଦେବକନ୍ୟା ମାନେ ମର୍ତ୍ତ୍ୟକୁ ଆସିଥିଲେ । ଗୋଟିଏ ମଣ୍ଡପ ଦେଖିଲେ, ସେହି ମଣ୍ଡପ ଉପରେ ଦେବକନ୍ୟାମାନେ ରହିଥିଲେ । ନଦୀକି ସ୍ନାନ କରି ଗଲେ । ସ୍ନାନ ସାରି ପାଟପଟନି ପିନ୍ଧିଲେ । ସେହିଠାରେ ରୁଦ୍ରମଣ୍ଡଳ କାଟିଲେ । ଈଶ୍ୱର ପାର୍ବତୀ ସ୍ଥାପିଲେ । ନନ୍ଦୀ ଭୃଙ୍ଗୀ ସ୍ଥାପିଲେ । କେଦାର

ନାଥଙ୍କୁ ସ୍ମରଣ କଲେ । ବନସ୍ତରୁ ଏକୋଇଶି ବର୍ଣ୍ଣର ଫଳ ଆଣିଲେ । ଏକୋଇଶି ଗୁଆ ଆଣିଲେ । ଏକୋଇଶି ପାନ ଆଣିଲେ, ଏକୋଇଶି ବରଫଳ ଆଣିଲେ । ଏକୋଇଶି ଖଣ୍ଡ କର ଓଢ଼ଳ ଆଣିଲେ । ଏକୋଇଶି ଅଁଳା କୋଳ ଆଣିଲେ । ଏକୋଇଶି ଦୁବ ଆଣିଲେ । କରଓଢ଼ଳକୁ ଏକୋଇଶି ଗଣ୍ଠି ପକାଇ ବ୍ରତ କଲେ । କଦଳୀ ନଈଅ ଅଖୁ ମୁଞ୍ଚା କଲେ । କେଦାରନାଥଙ୍କୁ ସ୍ମରଣ କରି ଧୂପ ଦୀପ ଦେଲେ, ନୈବେଦ୍ୟ କଲେ । ଫୁଲଚୁଳ ଦେଲେ । ଏମନ୍ତ ସମୟରେ ତକବଅ ପଣ୍ଡାର ଦୁଇଝିଅ ଦେବ କନ୍ୟାଙ୍କୁ ଦେଖିବାକୁ ଗଲେ । ଦେବକନ୍ୟାମାନେ ପୂଜା ସାରି ଦୁବ ତନ୍ତ୍ର ଲମଥାନେଶେଜନେଲ । ବ୍ରତ ବାହୁରେ ବାନ୍ଧିଲେ, କେଦାର ଗୋସାଇଁଙ୍କୁ ସାଷ୍ଟାଙ୍ଗ ହୋଇ ଦଣ୍ଡବତ କଲେ । ପୂଜା ପ୍ରସାଦ ଆନନ୍ଦରେ ପାଇଲେ । ହାତ ଧୋଇବାକୁ ବାହାରକୁ ଆସିଲେ । ତକବଅ ପଣ୍ଡାର ଦୁଇଝିଅ ସେଠାରେ ଠିଆ ହୋଇଛନ୍ତି, ଦେବକନ୍ୟାମାନେ ଦେଖି ପଚାରିଲେ, ତୁମ୍ଭେ କିଏସେକଥ ରକ୍ଷପୁଣୀ କି ପିଶାଚୁଣୀ, ଭୂତ କି ଡାହାଣୀ କହ, ନୋହିଲେ ଶାପ ଦେବୁ, ଜଳିଯିବ । ତାହା ଶୁଣି ତକବଅ ପଣ୍ଡାର ଦୁଇଝିଅ ଢିପି ଛୋଡାଇ ତଳେ ଥୋଇଲେ, ଗୋଡ଼ତଳେ ପଡ଼ିକହିଲେ, ଆମ୍ଭେ ଡାହାଣୀ ନୋହୁ, ରକ୍ଷାପୁଣୀ ନୋହୁ, ଭୂତ କି ପିଶାଚୁଣୀ ନୋହୁ ତକବଅ ପଣ୍ଡାର ଦୁଇଝିଅ । ଆମ୍ଭେ ଘଣ୍ଟି ପାଇଁ ଆସିଥିଲୁଁ । ଏଡ଼ ସରୋବର ଦେଖି ରହିଲୁଁ । ଖାଇବାକୁ ପେଟ ନାହିଁ, ପିନ୍ଧିବାକୁ କନା ନାହିଁ । ତାହା ଶୁଣି ଅପସରାଏ କହିଲେ, ତୁମ୍ଭେ କେଦାର ବ୍ରତ କରନାହିଁ କି ? ଏହାକହି ସେହି ଦୁଇ ଭଉଣୀଙ୍କି ଦୁଇଖଣ୍ଡ ବ୍ରତ ଦେଲେ । ତୁମ୍ଭେ ଦୁଇଜଣ କେଦାର

ବ୍ରତ କର, ଏହା କହି ଦେବ କନ୍ୟାମାନେ ସ୍ୱର୍ଗକୁ ଚାଲିଗଲେ । ଚନ୍ଦ୍ରରେଖା ପଣ୍ଡାର ଦୁଇଝିଅ ସ୍ନାନ କରି ଗଲେ । ପିନ୍ଧିଥିବା ଲୁଗା ଖଣ୍ଡକ ଦୁଆରେ ରଖିଲେ । ସ୍ନାନ କରି ଆସି ଦେଖିଲେ ଲୁଗା ଦୁଇଖଣ୍ଡି ପାଟପଣତନୀ ହୋଇଛି । ସେହି ପାଟ ପିନ୍ଧିଲେ, ବଉଫଳ ଗୁଆ କଲେ, ବର ଉହଳ ବ୍ରତ କଲେ, ବରମଞ୍ଜି ପାନ କଲେ, ବରଛାଲି ହଳଦ କଲେ, ଏକୋଇଶ ନାଡ଼ ଦୂବ କଲେ, ଏକୋଇଶି ବଉଫଳ ଆଣିଲେ । ବନସ୍ତରୁ ନାରିକେଳ, କଦଳୀ ଆମ୍ବ, ଆଣିଲେ । କେଦାରନାଥଙ୍କୁ ସ୍ମରଣ କରି ଓଷା ପକାଇଲେ । ଅର୍ଘ୍ୟ ଦେଲେ, ଫୁଲଫଳ ଦେଲେ, ମୂଳଦୁବ ଘେନାଲେ, ବ୍ରତ ଲଗାଇଲେ, ପ୍ରସାଦ ଖାଇଲେ, ଫେରି କୁଣ୍ଡୀମଠ ଘରକୁ ଗଲେ । କେଦାର ନାଥଙ୍କ ଆଜ୍ଞାରୁ ସେ ଘର କେମନ୍ତ ହେଲା, ଜଗତ ଅଟ୍ଟାଳି ହୋଇଛି, ହେମ ମନ୍ଦିର ହୋଇଛି, ଦ୍ୱାରରେ ହାତୀ, ଘୋଡ଼ା ବନ୍ଧା ହୋଇଛି, ପ୍ରଜାମାନେ ଜଗିଛନ୍ତି, ଦୁଇ ଭଉଣୀ ତାଟକା ହେଲେ । ମା' ଜଗତକର ଥାଇ ଦେଖୁଥିଲ, ଦୁଇଝିଅଙ୍କୁ ପାଛେଟି ନେଲ । ଘରି ଉବୁର ଦେଲାବେଳକୁ ଷଠିଠାବ ଦୁଇବର୍ଣ୍ଣ ହୋଇଛନ୍ତି । କେଦାର ନାଥଙ୍କ କୃପାରୁ ନିଶ୍ଚିନ୍ତରେ ଘରଦ୍ୱାର କଲେ ସେହି ଗ୍ରାମର ରାଜା ଚନ୍ଦ୍ରରେଖ ପଣ୍ଡାର ବଡ଼ ଝିଅକୁ ବିଭାହେଲା, ସାନ ଝିଅ ମନ୍ତ୍ରୀକି ବିଭାହେଲା । ଶ୍ରୀକେଦାର ନାଥଙ୍କ କୃପାରୁ ଦୁଇ ଭଉଣୀ ଉତ୍ତମ ସୁଖ ପାଇଲେ । ଦିନେ ରାଜା ମହାଦେଈଙ୍କ ହାତରେ ସୂତାଡୋର ଦେଖିଲେ । ସେ ସୂତା ବ୍ରତ କଲମ୍ବଗଛ ମୂଳରେ ଫିଙ୍ଗିଦେଲେ । ପୁନା ବ୍ରତ ଆଣି ଲଗାଇଲେ, ମନରେ ବେଶୀ ଡର ଗଲେ । ତବ ଶଙ୍କରନାଥ ଶ୍ରୀ କେଦାରନାଥ ଗୋସାଇଁ ଜାଣିଲେ । ଅନ୍ତୁଠାରେ ୯ ରାଜା ନବଣି ଗଡ଼ କଲ । ଏହା ଗଡ଼କୁ

ଖର୍ଚ୍ଚ କରିବା । ତାଙ୍କର ଯେତେ ଦ୍ରବ୍ୟ ଥିଲା ସେ ଦ୍ରବ୍ୟସବୁ କେଦାରନାଥ ହରଣ କଲେ । ଧନକୁ ଧନ ଚଉରଥ ପଣ୍ଡାର ଝିଅ ଅନେକ ଦୁଃଖ ପାଇଲା । କେତେ ଦିନ ଗଲା ଉତ୍ତାରୁ ରାଜା ମହାଦେବଙ୍କ ଭିକ୍ଷା ମାଗିଲେ । ଯେଉଁ ବ୍ରତକୁ ଛିଣ୍ଡାଇ କଲରା ଗଛ ମୂଳରେ ଫିଙ୍ଗି ଦେଇଥିଲେ, କଲରା ଗଛ ମୂଳରେ ବ୍ରତ ପଡ଼ିଥିବାରୁ ସୁବର୍ଣ୍ଣ କଲରା ଫଳିଲା । ସେହି କଲରାକୁ ଚଉରଥ ପଣ୍ଡାର ଝିଅ ନେଇ କୁମ୍ଭଟି ଘରେ ବିକି କରୁଥାଏ । ସୋଳେ ବୋଡ଼େ ଅଣି ପେଟି ପୋଷୁଥାନ୍ତି, ଏପରି ନାନା ଦୁଃଖ ପାଇଲେ, ରାଜ୍ୟଭ୍ରଷ୍ଟ ହେଲା, ହତଲକ୍ଷ୍ମୀ ହେଲେ । କେତେଦିନ ଗଲା ଉତ୍ତାରୁ ରାଜାଙ୍କ ଭାର୍ଯ୍ୟା ଭାଗ୍ୟବତୀ ଚଉରଥ ପଣ୍ଡା ଘରକୁ ଗଲେ ଭାଗ୍ୟବତୀଙ୍କ ମାତା ସୁଶୀଳା ପଚାରିଲେ, ତୁମ୍ଭେ କି ହେତୁ ହତଲକ୍ଷ୍ମୀ ହୋଇଅଛ । ଏହା ଶୁଣି ଭାଗ୍ୟବତୀ କହିଲେ ରାଜା ସୂତାର ବ୍ରତ କାଢ଼ି ସୁନାର ବ୍ରତ ଲଗାଇଲେ । ସେ ବ୍ରତ କଲରା ଗଛ ମୂଳରେ ପକାଇ ଦେଲେ । ସେହି ଦିନଠାରୁ ହତଲକ୍ଷ୍ମୀ ହେଲୁ । ସୁଶୀଳା ଏହା ଶୁଣି କହିଲେ, ତୁଲ ଯେଉଁଠାରେ ବ୍ରତ ଫିଙ୍ଗିଛ ଆଣିବା । ଭାଗ୍ୟବତୀ ଗଲେ, କଲରା ଗଛ ମୂଳରୁ ସୂତାର ବ୍ରତ ଆଣିଲେ, ବାହୁରେ ବାନ୍ଧିଲେ, ଓଷା ପୂଜିଲେ, ଦ୍ୱିଜ ପ୍ରସାଦ ଘେନିଲେ । ସେହି ବ୍ରତ କରିବାରୁ ସବୁ ଶୁଭ ହେଲା । ରାଜା ରାଣୀ ସୁଖରେ ରହିଲେ । ଏପରି କେତେ ଦିନ ଉତ୍ତାରୁ କାର୍ତ୍ତିକପୂର୍ଣ୍ଣିମୀ ପଡ଼ିଲା । ସପ୍ତଧାନ୍ୟ କେଦାରବ୍ରତ ପୂଜା । ଭାଗ୍ୟବତୀ ସକାଳୁ ସ୍ନାନକଲା, ଶ୍ରୀ କେଦାର ନାଥଙ୍କୁ ସୁମରଣ କଲା । ଏକୋଇଶି ବର୍ଣ୍ଣର ଫୁଲ କଲା, ଏକୋଇଶି ଦୁବ କଲା, ଏକୋଇଶି ଖଣ୍ଡ ଅପାମରଙ୍ଗ ଦାନ୍ତକାଠି କଲା ଏକୋଇଶି

ଗୃଅ କଲ, ଏକୋଇଶି ପାନ କଲ, ଏକୋଇଶି ବରଫଳ କଲ, ଏକୋଇଶି ଗଣ୍ଡକର ଓହଳ କଲ, ଏକୋଇଶି ଫଳ୍ପା ଢଳଢଳ କଲ, ଅଁଲ କୋଳ ଏକୋଇଶି କଲ, ଏକୋଇଶି ବର୍ତ୍ତୁର ଖଜା କଲ, ବରପିଠା ଏକୋଇଶି କଲ, ଦେଳୀ ନଡ଼ିଅ ଅଖୁ କାଟିଲ। ଏକୋଇଶି ଖିଅରେ ବ୍ରତକଲ। ସେହି ବ୍ରତରେ ଏକୋଇଶି ଗଣ୍ଠି ପକାଇଲ। ଗୃହକଳଶ ପୋଛି କଲ, ସର୍ବ ରୁଦ୍ର ମଣ୍ଡଳ କାଟିଲା, ଈଶ୍ୱର ପାର୍ବତୀ ସ୍ଥାପିଲା। କେଦାରନାଥଙ୍କୁ ସ୍ମରଣା କଲା। କଥା ଶୁଣିସାରି ଓଷ ପୂଜିଲା। ଦୁବପ୍ରସାଦ ଲଗାଇଲା। ଏପରି ଓଷା ପୂଜା ଭାଗ୍ୟବତୀ କରିବାରୁ କେଦାରନାଥ ପ୍ରସନ୍ନ ହେଲେ। ରାଜ୍ୟରେ ନିଶ୍ଚିନ୍ତରେ ରହିଲେ। ରାଜା ରାଣୀ ଅତି ଆନନ୍ଦ ହୋଇ ସୁଖରେ ରହିଲେ। ରାଜ୍ୟ ପାଇଲେ, ସାତ ପୁଅ ଜନ୍ମ ଦୁହିତା ହେଲେ। କେଦାର ନାଥଙ୍କ କୃପାରୁ ସୁଖରେ ରହିଲେ, ସର୍ବ ସମ୍ପଦ ମିଳିଲା। ତୁମ୍ଭେ ଏବେ କେଦାରବ୍ରତ କର, ସାମ୍ରାଜ୍ୟ ପାଇବ। ନୈମିଷା ଋଷିଙ୍କ ଠାରୁ ବ୍ରତ କଥା ଶୁଣି କୁନ୍ତୀ ଶ୍ରୀ କେଦାରବ୍ରତ କଲେ। କେଦାରନାଥଙ୍କ କୃପାରୁ ପଞ୍ଚପାଣ୍ଡବେ ସମ୍ରାଜ୍ୟ ପାଇଲେ, ଅତି ସୁଖରେ ରହିଲେ। ଏ ବ୍ରତ ଯେଉଁ ସ୍ତ୍ରୀମାନେ କରନ୍ତି ପୁତ୍ରବତୀ ଧନବତୀ ହୁଅନ୍ତି। ଅନ୍ତେ ସେମାନେ ବୈକୁଣ୍ଠକୁ ଯାନ୍ତି। ବ୍ରାହ୍ମଣ ଶ୍ୟାମର ତାଙ୍କ ପାଦେ ରହୁ ଭକ୍ତି।

ଶ୍ରୀ କେଦାରନାଥଙ୍କ ବ୍ରତକଥା ସଦାଇଯ୍ସ ସମ୍ପୂର୍ଣ୍ଣ



ପୁ... ...ର ସନ୍ନ୍ୟାସୀ ...ସ... ...ର ଶ୍ରୀ ...ନାଥ ସାହୁଙ୍କ ଦ୍ୱାରା ମୁଦ୍ରିତ